ପ୍ରକାଶକ—

ପ୍ରବାସୀ ପ୍ରକାଶନୀ
ଉପନ୍ୟାସ ମହଲ
ରାଣୀହାଟ
କଟକ ୧

ମୁଦ୍ରାକର—

ଲକ୍ଷ୍ମୀଧର ନାୟକ
ମହାଲକ୍ଷ୍ମୀ ପ୍ରେସ
କଟକ

ପ୍ରଥମ ପ୍ରକାଶ
ଏକହଜାର ଖଣ୍ଡ
୧୯୫୧

ବାରଅଣା

# ଆତ୍ମ କଥା

'ମୌସୁମୀ'ର କବିତା ଗୁଡ଼ିକରେ ମୁଁ ରକ୍ଷିତ ଦେଶ ଓ କାଳର ଯୁଗପତ୍ ପଦଚିହ୍ନ । ଭିନ୍ନ ଭିନ୍ନ ସମୟରେ ତେଣୁ ସେ ଗୁଡ଼ିକ ଲେଖା ଯାଇଥିଲା । ସେଥିରୁ କେତେକ ବି ଭିନ୍ନ ଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ବିକ୍ଷିପ୍ତ କବିତାଗୁଡ଼ିକ ଏକତ୍ର କରାଇ ଏ 'ମୌସୁମୀ' ପ୍ରକାଶ କରୁଛନ୍ତି ମୋର ବନ୍ଧୁ ଲକ୍ଷ୍ମୀଧର ନାୟକ—ଯେ ଆମ ଦେଶରେ କବି-ଔପନ୍ୟାସିକ ଓ ନାଟ୍ୟକାରଭାବରେ ସୁପରିଚିତ । ତାଙ୍କର ସହୃଦୟତା ପାଇଁ ମୁଁ ମୋର ହାର୍ଦ୍ଦିକତା ଜଣାଉଅଛି ।

ଅନୁଗୁଳ ରାଧାମୋହନ ଗଡ଼ନାୟକ ।
୧।୮।୧୯୫୧

# ସୂଚୀ

# ମୌସୁମୀ

ତୂର୍ଣ୍ଣ ଗଭର ହିଲ୍ଲୋଳେ ଅଜ ପୂର୍ଣ୍ଣ ବଳେ
ଧାଇଁ ଆସିଅଛି ମୌସୁମୀ ମୁହାଁ ସୃଷ୍ଟି ପରେ ।
ପ୍ରବାହେ ମୋହର କୃଷ୍ଣ ବାଦଲ ଦେଇଛ ଖୋଲି,

ମଣୁଚ କି ମତେ ?
ଅଲୁଳିତ କେଶ
ବିଲୁଳିତ ବେଶ
ଦୈତ୍ୟ ବୋଲି ।

ଡରୁଚ କି ମତେ ?
ଡାକୁଅଛି ମୁଁ ଯେ ମନ୍ଦ୍ରସ୍ୱରେ,
ହସି ଦେଉଅଛି ବଜ୍ର-ବିଜୁଳି - ଅଟ୍ଟହାସେ ।

ବରଷି ନେଉଛ ତୁମ୍ଭ କରକା ତୀବ୍ରତର
ମଡାଇ ଦେଉଛ ଅକାଳ ପ୍ରଳୟ ବର୍ଷା ଝଡ ।

ଡର ନା ମତେ ରେ
ଡର ନା ମତେ ରେ
ମର୍ତ୍ତ୍ୟ-ଜୀବ,
ରୁଦ୍ର ସିନା ଏ ମୂର୍ତ୍ତି ମୋହର
ମୁହିଁ ତ ଶିବ ।

ନୀଳ ସୁନ୍ଦର ମହାସିନ୍ଧୁର ଉରସ ପରେ
ଦୋଳୁଥିଲ ମୁହିଁ ହରଷଭରେ ।

କର୍ମି-ସଙ୍ଗୀର ଚକ୍ଷୁରେ ଚକ୍ଷୁକେ,
ପୀରତର ରସ-ହାସ-କୌତୁକେ
ଲଗାଇ ପାଣି,
କହୁ ଉଠୁଥିଲ "ରାଣି ଗୋ ରାଣି", !

ପ୍ରଣୟ-ମୁଗ୍ଧା କଲଉଚ୍ଛ୍ୱାସେ
କହୁ ଉଠୁଥିଲା ରସଉଲ୍ଲାସେ,
"ପ୍ରିୟ ହେ ପ୍ରିୟ,
ଅଧୁନା ଦିଅ ସେ ମଧର ପରଶ ଅଧର ଦିଅ ।"

ଲୋଟି ପଡ଼ ତାର ନଗନ ଜଘନ ବକ୍ଷପରେ
ଫେନ - ହାସ ତାର ପିଇ ପିଇ ଓଠ-ଚୁମ୍ବନରେ
ହେଉଥିଲ ରସ-ରଙ୍ଗେ ଭୋଳ,
ତପତ କାହାର ନିଶ୍ୱାସ
ବୁକୁ ବେଦନାର ଉଚ୍ଛ୍ୱାସ
ସହସା ବାଜିଲା ଅଙ୍ଗେ ମୋର ।
ଚଂଚଳ ମୁହଁ ଚାହଁତେ ଫେର
ଅନାଇ ଦେଖିଲ ଦୃଷ୍ଟି ମେଲ —

ତମାଳ ତାଳୀର କାନନିକା ଗୁଣ୍ଠ ବଳାକାଶ୍ରୀ
ମହାସିନ୍ଧୁର ବନ୍ଧୁର ବୁକେ ପଡୁଛି ଝାଂପି ।
ଧରଣୀର ତଳ ଖର ଉତ୍ତାପେ ଉଠୁଛି ଭରି
ଶଷ୍ୟ ଶମ୍ପ ପୁଷ୍ପ ବିତାନ ଯାଉଛି ଜଳି ।
ଧୂଳିର କୁହେଳି କୁଣ୍ଡଳି କୁଣ୍ଡଳି ଥରକୁ ଥର
ଧୂସର ଭରି ଦେଉଅଛି ଗଗନତଳ ।
ଶୈବଳିନୀର ସୈକତ ବୁକେ ରସର ରେଖା
ଶୁଖି ଯାଉଅଛି — ଯାଉ ନି ଦେଖା ।
ନୀଳ ସୁନ୍ଦର ଶୈଳ ପୁଞ୍ଜ,
ବୃକ୍ଷ ବଲ୍କଳ ଅଟବୀ କୁଞ୍ଜ
ପ୍ରଳୟ ଭଳି—
ଦାବ ଦହନରେ ଯାଉଛି ଜଳି ।
ତୃଷା-କାତର ଶୁଷ୍କ-କଣ୍ଠ ଯାଉଛି ଫାଟି
ଆଁ କରି ଏବେ ଶୂନ୍ୟେ ଚାହିଁଛି ଦୀର୍ଣ୍ଣ ମାଟି ।

ମାଟିର ଭକତ ଅନ୍ତରେ ଚାହିଁ ବାରକୁ ବାର
ଡାକ ଦେଉଅଛି ହା - ହା - କାର ।

ସକଳ ଉପେକ୍ଷି
ମୁହିଁ ନ ଦେଖୁଣୁ ପ୍ରେୟସୀ ମୋହର, କହିଲ "ଏକି" ?

ମୁଁ କହିଲି, "ଥାଅ, ଚଲିଲି ଏବେ ।"
ସେ କହି ଉଠିଲା "ମୁଁ ଯିବି ତେବେ ।
ମୁହିଁ କି କେବଳ ଜୀବନର ଭ୍ରମ
ନର୍ମମୟୀ ?
ହୋଇ ପାରିବନି କର୍ମ - ସଙ୍ଗୀ ?
ହେ ମୋର ପ୍ରିୟ
ସଙ୍ଗେ ନିଅ । "

ବିପୁଳ ପୁଲକ-ପରଶ-ଭରେ ମୁଁ ହରଷଭରେ
ପ୍ରିୟାରେ ମୋହର ଆଶ୍ଳେଷି ନେଲି ଉରସ ପରେ ।
ଅଉ ତ କାହିଁ
ଘନ ବଂଧନ ଫିଟିଲ ନାହିଁ ।

ଦୁଇଟି ଜୀବନ ମିଶି ଯାଇ ଅଜ ମିତ୍ର ସଙ୍ଗେ
ଧାଇଁ ଆସିଅଛି ମୌସୁମୀ ମୁହିଁ ଧରଣୀ ଭାଗେ ।

ନମ୍ର ନୁହଇ ଭମ୍ର ନୁହଇ, ନୁହଇ ଧୀର
ଉଗ୍ର ମୁଁ ଅଜ, ବ୍ୟଗ୍ର ମୁଁ ଅଜ ଅଗ୍ରସର ।

ସାଗର ବକ୍ଷୁ ବହ୍ନ ଅଣି ଅଚ୍ଛ ସଲିଲଧାର
ଦୂର ଦଗନ୍ତୁ ଉଡାଇ ଅଣିଚ ବାଂଶଦମାଳା ।
ପୀଡ଼ିତ ପ୍ରାଣର ମଂଗଳ ଲୋଗେ ଜୀବନ ଦେଇ
ଦୁର୍ଦ୍ଦିନ ମୁହଁ
ସୃଷ୍ଟିର ତଳେ
ଦୁର୍ଦ୍ଦିନ ମୁହଁ
ଅଣୁଚି ଏଇ......

---

# ସୃଷ୍ଟିର ଅପମାନ

ଭଗବାନ- ଭଗବାନ,
କେଉଁଦେଶେ ବସି    ଦେଖୁ ଅଛ ଆଜ
ସୃଷ୍ଟିର ଅପମାନ ?

ନିଜ ରୂପ ଦାନେ    ମୁଗ୍ଧ ପରାଣେ
ବିଶ୍ୱ-ଭୁବନ-ଭୂମେ
ଜୀବ ଜଗତର    ସୃଷ୍ଟି ଉପରେ
ଗଢିଛ ଯାହାକୁ ତୁମେ,

ଦୀପ୍ତ ଯାହାର    ଶୁଭ୍ର ଲଲାଟେ
ବିଦସ୍ତୁ ଅଲଂଘନ
ଅସିବାର ବେଳେ    ଅଙ୍କି ଦେଇଛ
ମଙ୍ଗଳ ବିଭୂଷଣ,

ଦିବସ ନିଶିର    ସଙ୍ଗମ ଶିଖ୍ର
ପ୍ରଭାତ ପ୍ରଦୋଷ ପର
ମର୍ତ୍ତ୍ୟେ ଅସିଛ    ଦେବ ଦୈତ୍ୟର
ସାମ୍ୟ ମିଳନ ଧର,

ପ୍ରିୟତମ ତୁମ ସୃଷ୍ଟି ସେଇ ଯେ
ଶ୍ରେଷ୍ଠ ମଣିଷ ଜାତ
ଅନ୍ଧ ଗର୍ବେ ଛନ୍ଦ ହଜାଇ
ଖୋଜୁଛି ନରକ ସାଥି ।

ଭଗବାନ, ଭଗବାନ,
କେଉଁ ଦେଶେ ବସି ଦେଖୁଅଛ ଆଜ
ସୃଷ୍ଟିର ଅପମାନ ?

ନିତ ଦେଖୁଅଛି ଶକୁନି ଶୃଗାଳ
ବିଶ୍ୱ-ଧରଣୀ-ତଳେ
ଜୀବନ ଶୋଷଇ ପରାଣ ତୋଷଇ
ନିର୍ଜୀବ ଶବପରେ ।

ମାନବ କଅଣ କରୁଛି ହାସ୍ୟରେ
ସଭ୍ୟ ମଣିଷ ଜାତ
ବିକାର ନ ରଖି ମଣିଷ ଶିକାର
କରୁଅଛି ଦିବା ରାତ୍ର ।

ବିଜ୍ଞାନ-ଜାତ ଅଜ୍ଞାନ-ଜାତ
କମାଣ ଗୋଳାର ବଳେ
ଭସ୍ମ କରଇ ଧ୍ୱଂସ କରଇ
ପ୍ରବଳ ନିର୍ବଳରେ ।

ହଜାର ହଜାର    ବରଷର ତଳେ
ଜଗାଇ ଶଙ୍କା ଭୟ
ବନ୍ଧୁ ଅରବେ    ବଜାଇ ହେଉଁଚ
ଅପଣାର ଜୟ ଜୟ ।

ଜୟ ପରାଜୟ    ହାନି ଲଭେ ଯାର
କାଂଶତ ନାହିଁ ଭାଗ
କ୍ଷମତାର ରୂପେ    ନିରୀହ ଜୀବନ
ବଳି ପଡୁଅଛି ଅଗ ।

ମାଟିର ଉପର    ବରଷ ତମାମ
ଝାଳର ରକତ ଦେଇ
ମାଟିର ଉରସେ    ସୁନାର ଫସଲ
ସୃଷ୍ଟି କରୁଚି ଏଇ ।

ରାଜାର ଶାସନ    ପରଜା ନାଶନ
କଉଳ ଦଳେ କୌଶଳେ
ଦଣ୍ଡକେ ତାହା    ଲୁଟି ନେଉଅଛି
ସିଂହ-ଅସନ-ତଳେ ।

ପୀଡ଼ିତ ପରଜା    ଜଣାଇଲେ ଯାଇ
ଦୈନ୍ୟ-ବେଦନ-ଭାର
ଲୁହାର ଫଉଜ    ବନ୍ଧୁକ ମୁଖେ
ବିଚାର କରୁଚି ତାର ।

ଧର୍ମର ଧ୍ୱଜା ବାହାରେ ଉଡାଇ
ଧର୍ମର ଧନେ ଆଜ
ଦେହର ଓଜନ ବଢାଉଚି ଖାଲି
ମଠପତି ମହାରାଜ ।

ଧର୍ମ ଜମାର ଉଜାଡ଼ କରୁଚି
ଟିକଏ ବଗୁର ନାହିଁ,
ପଣିକା ଦେହର ଖୋହନ କରୁଚି
ଟିକଏ ବଢାର ନାହିଁ ।

ଦେଶ ବିଦେଶରେ ଦିଗ ବିଦିଗରେ
ପୁଞ୍ଜିପତିର ଦାଉ
ନିଖିଳ ଦୁନିଆ ଗ୍ରାସି ଯାଉଅଛି
ଦଣ୍ଡକେ ଗୃହୁଁ ଗୃହୁଁ ।

ଦୁଃଖ-ଯାତନା- କ୍ଲିଷ୍ଟ ଜୀବନ
ନିଃସ୍ୱ ଦଳିତ ଭାଇ
ଧରିତଳେ ମଥା ଗୁଞ୍ଜିବା ପାଇଁ
ଠାବ ପାଉ ନାହିଁ କାହିଁ ।

ଯନ୍ତ୍ରର ଯହିଁ ପୁଞ୍ଜିତ ଧୂଆଁ
ଘୋଟିଅଛି ଭରପୁର
କର୍ମଶାଳାରେ ଘର୍ମ ନିଗାଡ଼ି
ମରୁଅଛି ମଜଦୁର ।

ଅମାବାସ୍ୟାର ଘନ ଅନ୍ଧାରେ
ଉଜ୍ଜଳ ଦୀପାଳି ଖଚି
ଉଚ୍ଚ ଚୂଡ଼ର ହର୍ମ୍ୟ ମାଳିକ
ପୂର୍ଣ୍ଣିମା ପାଳୁଅଛନ୍ତି ।

ସୃଷ୍ଟି ପାଳନେ ଯା ହାତରେ ତୁମେ
ଦେଇଚ ଯେ ଅଧିକାର
ନ୍ୟାଯ୍ୟ ବେଭାର ନ କରି ସେ ତାର
କରୁଅଛନ୍ତି ଅପବ୍ୟୟ ।

ଭଗବାନ, ଭଗବାନ,
କେଉଁ ଦେଶେ ବସି ଦେଖୁଅଛ ଆଜ
ସୃଷ୍ଟିର ଅପମାନ ?

ମଣିଷ ସନ୍ତାନେ ଭୁଲି ଯାଉଅଛନ୍ତି
ମଣିଷର ଅବଦାନ
ମଣିଷର ବୁକେ ଲକ୍ଷ୍ୟ କରି ସେ
ମାରୁଚି ବହ୍ନି-ବାଣ ।

ସାରା ଦୁନିଆରେ ଆଜ ସେ ହୋଇଚି
ଅମଙ୍ଗଳର ହେତୁ,
ସାରା ଆକାଶରେ ଜାଗି ଉଠିଚି ସେ
ଧ୍ୱଂସର ଧୂମକେତୁ ।

ଯେଉଁ ପଥେ ତାର ଚରଣ ପଡ଼ଇ
ମଉଳଇ ପଥଘାସ,
ଯେଉଁ ଦିଗେ ତାର ଦୃଷ୍ଟି ଚଳଇ
ସକଳ ଦଗ୍ଧ ନାଶ ।

ନିଶ୍ୱାସେ ତାର ବାୟୁ-ମଣ୍ଡଳ
ଶଙ୍କାରେ ଉଠେ ଥରି,
କନ୍ଦସୀ ଏଇ ପ୍ରକୃତ ସାରା
କନ୍ଦନେ ଉଠେ ଭରି ।

ଭଗବାନ, ଭଗବାନ,
କେଉଁ ଦେଶେ ବସି ଦେଖୁଅଛ ଅଜି
ସୃଷ୍ଟିର ଅପମାନ ?

---

# ଉଦ୍ଧାମ ସିଂ

ଜନ୍ମଦା ମୋର ଭାରତ ଭୂଇଁର ବହୁଦୂରେ ସାଥି, ବହୁଦୂରେ,
ବନ୍ଦୀ ମୁଁ ଆଜି ଉଦ୍ଧାମ ସିଂ ଏଇ ଲଣ୍ଡନ କାରାପୁରେ ।
ସମ୍ମୁଖେ ମୋର ଫାଶିକାଠ,
ଶିଖ-ସନ୍ତାନ ଶୁଣାଉଚି ମୁହିଁ ଜନ୍ମମାଟିର ଜୟ ପାଠ ।

ଅପରାଧ ମୋର, ଅପରାଧ ମୋର ଶୁଣ ତେବେ ସାଥି, ଶୁଣ ତେବେ,
ତରୁଣ ଅରୁଣ ଜୀବନେ ମୋହର ମୃତ୍ୟୁ ବରୁଚି କିଆଁ ଏବେ ।
ଝଡ ବିପ୍ଳବ - ସଂଘାତେ
ପଞ୍ଜାବ-ଲାଟ ଓଡ଼ାୟାର ବୁକେ ଗୁଳି ମାରଚି ମୁଁ ଏଇ ହାତେ ।

ତୁମେ ଜାଣିଥିବ ତୁମେ ଶୁଣିଥିବ, ଭଲ କରି ଶୁଣ ଏଇବାର
ଆମରି ଦେଶର ଆମରି ଜାତିର ଦୁଃସ୍ୱପନ ସେଇ ଓଡାୟାର ।
ପଞ୍ଚ ନଦୀର ଅଞ୍ଚଳେ
ରକ୍ତର ସୁଅ ବୋହିଲା ସେଦିନ ଜାଲିଆନାବାଗ ଭୂଇଁତଳେ ।
ଦୁର୍ମତି ସେଇ ଓଡାୟାର,
କିଏ ସେ କହିବ ମଣିଷ ତାହାକୁ ? ମଣିଷ ରୂପେ ସେ ଜାନୁଆର ।

ତୀବ୍ର ବୈଠକରେ ସଭା ବସିଥିଲା କ୍ଷୁବ୍ଧ ଦଳିତ ଜନତାର
କଥା ଉଠୁଥିଲା, "ବଡ ଧପାବାଜ ଆମ ଏ ବିଦେଶୀ ସରକାର ।
ଯୁଦ୍ଧକୁ ଆମେ ସଂପଦ ଦେଲୁ ଢାଳିଦେଲୁ ରକ୍ତ-ଲହୁଧାର
ଆମ ଦୁର୍ଦ୍ଦଶା ଦେଖିବାକୁ ଟିକେ ବଳିଗଲା କାହିଁ ସରକାର ?
ଶାସନ ନୀତିର ଶୋଷଣ ପେଷଣ ସହିବା ନାହିଁ ଅଉ ମଥାପାତି
ଶକ୍ତି ଏଥର ଦେଖାଇବା ଆମେ, ଲଢ଼ାରେ ଗଢ଼ିବା ଏଇ ଜାତି ।"

ଗୁଡୁମ୍ ଗୁଡୁମ୍ ଅବାଜ ଶୁଭିଲା, ହୁକୁମ୍ ଦେଇଛି ଓଡାୟାର,
"ଅଗ୍ନି-ଶିଖାରେ କି ଖେଳ ଖେଳୁଛ ? ହୁସିଆର ଏବେ ହୁସିଆର ।"
ବୁଲେଟ୍ ଗୁଳିଲା ଅଗ୍ନିମାଳି,
ଭାଗ ଭାଗ ହୋଇ ଛୁଟିଲେ ହଠାତ୍ ତହିଁ ଥିଲେ ଯେତେ ନରନାରୀ ।

ଝଣ୍ଡ ପୋକ ପଣ ଧରଉଠିଲେ ତେବେ ଝଣ୍ଡିଲେ ମଣିଷ ଦଳ ଦଳ,
ଗୁଳି-କଲାଲରେ ରଞ୍ଜିତ ହେଲା ଜାଲିଅନାବାଗ ଭୂଇଁତଳ ।,
ଛିତ୍ର ବିଂଥିତ ପଞ୍ଜାବ ସାରା ଉଠେଇ ତୋଳିଲା ପ୍ରତିବାଦ
ସରକାର ତହୁଁ ହୁଙ୍କାର ଦେଲା 'ନ୍ୟାଯ୍ୟ ନୁହେଁ, ଏ ଅପରାଧ ।'
ପଞ୍ଜାବ ସାରା ରଣଭୂଇଁ ହେଲା, ଯୁଦ୍ଧ ଆଇନ୍ ହେଲା ଜାରି,
ପଥେ ପଥେ ଘୂରି ଫଉଜ କୁଦିଲେ, ବେଇଜତ ହେଲେ ପୁରନାରୀ ।
ଶମନ ପରାଏ ଦମନର ଲୀଳା ଚଳାଇଲା ଅମ ସରକାର
ପରିଶେଷେ ଯେଉଁ ପ୍ରତିକାର ହେଲା, ତାହାର ନାଆଁ କି ପ୍ରତିକାର !

ବହୁ ଦିନପରେ ସେଇକଥା ଶୁଣି ଜଳି ଜଳି ମୁହିଁ ଗୁଡଉଠିଲେ,
ଉଦ୍ଧାମ ମୁହିଁ ଗୁଳି ବର୍ଷାଇଥା ହେଇ ଓଡ଼ାୟାର ଗୁଡପରେ ।
ଏଥିପାଇଁ ଅଜ କିଏ ଦାୟୀ ?
ଅତ୍ୟାଚାରୀଙ୍କ ହତ୍ୟା କରି ମୁଁ ହୋଇଅଛି ଖୁନୀ ଆତତାୟୀ ।

ଜାଗିଥିଲା ଯେଉଁ ବହ୍ନିର ଲୀଳା ପଞ୍ଚ ନଦୀର ମାଟିପରେ
ନୟନରେ ତାହା ଦେଖି ନ ଥିଲି ମୁଁ ଶୁଣିଥିଲି ଖାଲି ଶ୍ରବଣରେ ।
ପରଥମ କଥା ଶୁଣିଲି ଯେଦିନ ହୋଇଗଲି ମୁହିଁ ସତେ ଜଡ଼,
ଜଡ଼ତାକୁ ମୋର କଂପିତ କରି ଉଥଳି ଉଠିଲା ମହାଝଡ ।
ଅଜ୍ଞାତେ ଅସି କିଏ କରିଦେଲା ପଥେ ପଥେ ମୋର ଗତିରୋଧ
ବିଦ୍ୟୁତ ସମ ଚିତ୍ତେ ସ୍ଫୁରିଲା ପ୍ରତିଶୋଧ ଖାଲି ପ୍ରତିଶୋଧ ।

ଉନ୍ମାଦ ସମ ଛୁଟିଗଲି ମୁହିଁ ଜାଲିଆନାବାଗ ଅଞ୍ଚଳେ,
ଉତ୍କଟ ଏକ ଉଦ୍‌ବେଗ ମୁହିଁ ଅନୁଭବ କଲି ଅନ୍ତରେ ।
ଧୋଇଲାଣି ସେହି ପ୍ରାନ୍ତର ଘୃତ କେତେ ଅଷାଢର ବାରିଧର,
ଦେଖାଗଲା ମତେ ପ୍ରାନ୍ତର ଘୃତ ତାଜା ରକ୍ତରେ ଜର ଜର ।
ଉନ୍ମାଦ ପରି ଶୋଇଲି ମାଟିରେ, ତାର ତଳେ ଯେଉଁ ଲଭି ଥିଲା
ବହ୍ନି ତାପରେ ଉତ୍ତେଜିଲା ମୋର ସ୍ପନ୍ଦିତ ଶିରା ଉପଶିରା ।

ଚମକି ଉଠି ମୁଁ ସେ ପଥର ଧୂଳି ବୋଳି ହେଲି ମୋର ଦେହମୟ
ଜଳିଗଲା ମୋର ମର୍ମ ଭିତର — ଦୁଃସହ ବଡ ଦୁଃସହ ।

ମାଟିରୁ ମୁଠାଏ ସେନି ସଂଭ୍ରମେ ଶପୁଛିଲି ମୁହିଁ ଜୋର୍ କରି
ରକ୍ତର ରାଗେ କରତଳ ମୋର ଲୋହିତ ହୋଇଲା ଜବାପରି ।
"କେଉଁଠି ଧୋଇବି ଏହି ଦାଗ ମୋର ? କେଉଁଠି ଧୋଇବି କରତଳ ?
ଧୋଇ ପାରିବ ସେ କେଉଁ ଶତଲେଜ୍-ସିନ୍ଧୁ-ଝିଲମ-ନଦୀଜଳ ?"

ଶପଥ କଲି ମୁଁ ଥରେ ଥରେ,
"ଧୋଇବି ନାହିଁ ମୁଁ ଏ ହାତ ମୋହର, ରହିଥାଉ ଏହା ଏଇପରି ।"
କାହିଁରେ ହୋଇବ ମନ ବୋଧ ?
ବିଦ୍ୟୁତ ସମ ଚିତ୍ତେ ସ୍ଫୁରିଲା ପ୍ରତିଶୋଧ ଖାଲି ପ୍ରତିଶୋଧ ।

ଦୁର୍ଗମ ଏଇ ମହାନଗରୀର ରାଜପ୍ରତିନିଧି ସଭାଘରେ
ଗୋପନେ ପଶି ମୁଁ ଗୁଳି ବସାଇଛି ସେଇ ଓଡାୟାର-ଛାତିପରେ ।
ଲକ୍ଷ ଲକ୍ଷ ବାଣ ବଦଳରେ ମୁହିଁ ମାରି ଅଛି ସେଇ ଏକ ବାଣ,
ଲକ୍ଷ ଲକ୍ଷ ପ୍ରାଣ ବଦଳରେ ଆଜି ନେଇଅଛି ସେଇ ଏକ ପ୍ରାଣ ।
ମାତୃଭୂମିର ଇଜ୍ଜତ ଲାଗି ଯାହା ଜୀବନରେ ଅଛି ସାଧ
ଆମ ସରକାର ଚକ୍ଷୁରେ ମୁହିଁ ଆତତାୟୀ, ମୁହିଁ ଅପରାଧୀ ।

ସମ୍ମୁଖେ ମୋର ଫାଶିକାଠ,
ମୃତ୍ୟୁରେ ଆଜି ଶୁଣାଉଛି ମୋର ଜନ୍ମମାଟିର ଜୟପାଠ ।

# ମନ୍ଦିର ଓ ସମାଧି

ସତ୍ୟବାଦୀର ମନ୍ଦିରେ ଯାଇ ଦରଶନ କଲି ଦିଅଁ
ମୋ ଦେଶ କହଇ, "ପ୍ରବାସୀ ଦିଅଁ ସେ ଭକ୍ତଜନର ପ୍ରିୟ ।"
ସତ୍ୟ କାଏଁ ସେ ନ ରଖିଲ ବୋଲି ସାକ୍ଷ୍ୟ ଦେବାକୁ ଏଥେ,
ବୃନ୍ଦାବନର ଦିଅଁ ଆସିଥିଲେ ସତ୍ୟବାଦୀର ପଥେ ।
ସତ୍ୟରୁ ଦିଅଁ ରାଧାର ବିରହେ ପାଇଲେ ପ୍ରଣୟ-ବାଧା
ପଦ୍ମା-କୁମାରୀ ଲକ୍ଷ୍ମୀ ଭିତରେ ଦେଖିଲେ ପିଆରୀ ରାଧା ।
ନୟନେ ଦେଖିଲି ପ୍ରୀତିର ଦେବତା—ଦୃଷ୍ଟି ପଲକହୀନ
ପ୍ରୀତି-ସ୍ନାନ ଏକ ପ୍ରତିଭା ଦେଇ ମୁଁ ଧରିଲି ପୁଣି ମୋ ପଥ ।

ବହୁଳ ବକୁଳ ଝୁରିଅଳା ତରୁ, ସେବ ଯହିଁ ଗୁରୁ ପାଖେ
ସମାଧି ଭିତରେ ଗୋପବନ୍ଧୁରେ ଦେଖିଲି ମୁଗ୍ଧ ଆଖେ ।
ଦେବତା ନୁହଇ ମଣିଷ ଥିଲା ସେ ମଣିଷର ଭବଗ୍ରାହୀ,
ଜୀବନ ଓର ସେ ଲଢିଲ ସହିଲ ପୀଡ଼ିତ ମଣିଷ ପାଇଁ ।

ତାହାର ଚରଣେ ମଥା ନୁଆଇଁ ମୁଁ ଶ୍ରଦ୍ଧା ଢାଳିବା ଆଗୁଁ
ଆଖି ଉଚ୍ଛୁଳାଇ ଲୁହ ବହିଲ ମୋ ହୃଦୟର ମର୍ମସ୍ତରୁଁ ।
ବାଟପାଶେ ତାର ଭୁଲି ଡାକିବାର ଅଧୁର ଢାଳିଲି ଲୁହ
କହୁ ପାରିବନି କେହୁ ଯଦି ମତେ ପଚାରିବ କିଆଁ ଲୁହ ।

---

# ତୁମେ ଆପେ ଉଠ ଜାଗି

୧

ପରମେଶ୍ୱର, ତୁମର ବୁଦ୍ଧ
କହୁଥିଲେ ବାର ବାର,
"ବିଶ୍ୱ ଭୁବନେ ମାନବ ଜୀବନେ
ଅହିଂସା ଏକା ସାର ।"

ସେଇ ଦିକ୍ ସହୁଁ ବାଜି ଉଠୁଥିଲା
ମୁଗ୍ଧ ମାନବ ବୁକେ
ଭାଷା ପାଇଥିଲା ଚୈତ୍ୟ ବିହାର
ପାଷାଣ ଫଳକ ମୁଖେ

ସେଇ ଦେଶେ ଆଜି ରକ୍ତ ଝରଇ
ଲକ୍ଷ ନିସ୍ୱଙ୍କ ଦେହୁଁ,
କ୍ଷୁବ୍ଧ ଜନତା ହେଉଛି ନିପୃତ
ଅକୂଳ ଯୁଦ୍ଧ ଠେଉ ।

୨

ପରମେଶ୍ୱର,          ଖ୍ରୀଷ୍ଟର ପୁତ୍ର
କହୁଥିଲେ ବାର ବାର,
"ଏ ଗାଲରେ କେହୁ   ଆଘାତ କରିଲେ
ଦେଖାଇବ ଆର ଗାଲ।"

ସେହି ବାଣୀର ଦେଶେ   ଶତ୍ରୁର ବେଶେ
କେହୁ ନ ଉଠୁଣୁ ଜାଗି
ଶକ୍ତି-ମାତାଲ       ପଥେ ପଥେ ଘୂରି
ଲକ୍ଷ ଦେଉଛି ଦାଗି।

ଲକ୍ଷ ଘରଣ       ଭସ୍ମ ହୋଉଛି
ପରମାଣୁ ବୋମା ବଳେ
କଂପ ଜାଗୁଛି       ଆକାଶ ବତାସ
ସିନ୍ଧୁ ଧରଣୀ ତଳେ।

୩

ସେଇ ଭୈରବ       ମୃତ୍ୟୁର ଲୀଳା
ପାଣ୍ଡୁ ଧରାକୁ ଘେର
ତାଣ୍ଡବ ଛନ୍ଦେ       ପର ଦିକ୍ ଦେଶ
ପଲକେ ଯାଉଛି ଖେଳି।

ବିଶ୍ୱ ଭୁବନ     ବକ୍ଷେ ଅଙ୍କା ଏ
ଧ୍ୱଂସର ମହାଦାଉ
ଅମୃତ ଜୀବନ     ପ୍ରାପ୍ତି ଦିଏ ଯଥା
ଚନ୍ଦ୍ର ଲୋକକୁ ରହୁ ।

ଏତେବେଳେ ଆଜ     ଏଇ କ୍ରନ୍ଦସୀ
ଏଇ ସୃଷ୍ଟିର ଲାଗି
ତୁମେ ଜାଗି ଉଠ     ପରମେଶ୍ୱର,
ତୁମେ ଅଂପ ଉଠ ଜାଗି ।

---

# ହେ କବି ନୋଗୁଚି

ତୁମେ ସତେ ଜାଣୁ ନାହିଁ ! ଯାପାନର ହେ କବି ନୋଗୁଚି,
ତୁମର ଦେଶର ହାତେ ଚାଇନା କି ଲାଞ୍ଛନା ଭୋଗୁଚି ! !
ତୁମେ ସତେ ଜାଣୁ ନାହିଁ ! ବୁଦ୍ଧାସକ୍ତ ଚାଇନାର ବୁକେ
ନର ଆଜି ନର ରକ୍ତ ପିଉଅଛୁ ଉଲ୍ଲାସ କୌତୁକେ ।
ନାନ୍‌କିନ୍ ପରେ ଆଜି ବ୍ୟୋମଝମ୍ପ ବୋମା-ବିସ୍ଫୋରଣ
ଜନତାର ବକ୍ଷପରେ ଗର୍ଜୁଅଛି ମରଣ ମରଣ ।
ୟାଂସି କିୟାଂ ନଦୀ ଛାତିପରେ ଉଠଇ ଶିହର
ଜଳର ଲହରୀ ନୁହେ ଉଠୁଥିଲା ଏ ରକ୍ତର ଲହରୀ ।
ଚାଇନା ନାରୀର ମାନ ଦୃପ୍ତ ତୁମ ସୈନିକର ହାତେ
ଉତ୍ପୀଡ଼ିତ ହେଉଅଛି ପଲ୍ଲୀପୁରେ ହାଟେ ବାଟେ ଘାଟେ ।
ଜଗତର ପଥେ ପଥେ ଆଜି ସେଇ କରୁଣ ବାରତା
ପ୍ରାଣେ ପ୍ରାଣେ ଜଗାଉଚି ଅନୁକମ୍ପା, ସଜଳ ମମତା ।
ସାରା ଦେଶ ଧରି ଏ ଯେ ପ୍ରଳୟର ତାଣ୍ଡବ ଜାଗୁଚି,
ତୁମେ ସତେ ଜାଣୁନାହିଁ ଯାପାନର ହେ କବି ନୋଗୁଚି ! !

ପଲକେ ପଲକେ ସବୁ ଜାଣୁଅଛି ସାକ୍ଷୀ ଏ ଜଗତ
ନବଶୀ ପୁଣି ଜାଣୁଅଛି ପ୍ରତିବେଶୀ ଅମ ଏ ଭାରତ ।
ସେଇ କଥା ବକ୍ଷେ ଧରି ଥର ଥର ଝଡ଼ର ବତାସ
ଘରେ ଘରେ ଦ୍ୱାରେ ଦ୍ୱାରେ ଢାଳୁଅଛି କାତର ଉଚ୍ଛ୍ୱାସ ।
ସେଇ କଥା ବକ୍ଷେ ବହି ସାଂପୁ ନଈ ତମେଲ୍ କଳ ବାଣୀ,
କହୁଅଛି ତୁଇନାର ରକ୍ତାପ୍ଲୁତ କରୁଣ କାହାଣୀ ।
ଅନାଦି ଯୁଗର ସାକ୍ଷୀ ହିମାଚଳ ଶିରେ ଶୁଭ୍ର ଜଟା
ବକ୍ଷେ ଦେଖି ଆସି ଅଛି କେତେ ଯେ ଜୁଆର କେତେ ଭଟା ।
ସେ ଅଜି ପାଷାଣ ଦେହେ ଶୁଷ୍କ ଜରା-ଜର୍ଜର ଜୀବନେ
ତୁଇନାର ରକ୍ତ ଲେଖା ଦେଖୁଅଛି ଶଙ୍କିତ ନୟନେ ।
ତୁଇନାର ପୁଞ୍ଜୀଭୂତ ରକ୍ତ ବ୍ୟଥା ଭାସି ଭାସି ଆସେ
ଆମରି ଏ ଘଟପରେ ଆମରି ଏ ଭାରତ ଆକାଶେ ।
ତୁମରି ସେ ଅତ୍ୟାଚାରେ ତୁଇନା କି ଅକୁଳ ଆରତ
ବେଶୀ ଆଜି ଜାଣୁଅଛି ପ୍ରତିବେଶୀ ଅମ ଏ ଭାରତ ।

କହ କେତେ ବର୍ବର, ବସି ତୁମେ ଆଜ କେଉଁ ମୁଖେ
ବାଢୁଅଛ ଏଇ ଯୁକ୍ତି, ଏଇ ଉକ୍ତି ବିଶ୍ୱର ସମ୍ମୁଖେ !!
ସ୍ୱଜାତିର ହିଂସାବୃତ୍ତି, ସ୍ୱଦେଶର ରକତ ବାସନା
ନ୍ୟାଯ୍ୟ ବୋଲି, ସତ୍ୟ ବୋଲି, ଧର୍ମ ବୋଲି କରୁଛ ଘୋଷଣା
ବୁଦ୍ଧର ଅହିଂସା ପଥେ କବ ତୁମେ ସାଜ ନିର୍ବିଚାର
ଯୁଦ୍ଧ ଛଳେ ଧର୍ମନୀତି, ମର୍ମ ନୀତି କରୁଛ ପ୍ରଚାର !!
ମାତାଲ ସୈନିକ-ଲକ୍ଷ୍ୟ କରି ତୁମେ ଜୀବନର ସାଥି
ରକତର ଅଭିଷେକେ ଆଜ ଯାହା ଉଠିଅଛି ମାତି ।
ବିଶ୍ୱର ମହତ୍ତ ଲକ୍ଷ୍ୟ, ଜଗତର ବ୍ୟାପକ ଅନ୍ତର
ଭୁଲି ଯାଇ ଅଛ ତୁମେ ଜୀବନର ସୀମା ବୃହତ୍ତର ।
ବିଶ୍ୱର ଚକ୍ରାନ୍ତ ଦେଖି, ଜୀବନର ସଂକୀର୍ଣ୍ଣତା ପୁଞ୍ଜେ
ଉଡ଼ାଇ ଅଛିତ ସିନା ସ୍ୱଦେଶର ଅବଳା ଗୃହବଧୂ ।
ବିଶ୍ୱର ସଭାରେ ଲଘୁ ହୋଇଛ ହେ ବିଶ୍ୱର ମଣିଷ,
ଭୁଲିଅ ବଙ୍ଗାରେ ହାୟ ଯଥା ତୁମି ଯାପାନୀ ଜନାସ !!

---

# ୟାରବାଡ଼ା କାରାବାସେ

“ଜୀବନେ ତୁମର କାରା ବରଣ ତ ହୋଇପାରେ ନାହିଁ ଦୁଃଖ
ଗଭୀର ବିଷାଦେ ଗାନ୍ଧିଜୀ କିଆଁ ମଳିନ ଦିଶୁଛି ମୁଖ ?।
ପୂର୍ବବତ ତବ ସ୍ୱାସ୍ଥ୍ୟ ନାହିଁ ତ ଶରୀର ହୋଇଛି କ୍ଷୀଣ,
ନୟନ ଅନଳ ଦେଖା ଯାଉ ଅଛି ନିସ୍ତେଜ ନିମଳିନ ।
ଜୀବନର ପଥେ ପଥେ ଆଜି ମୋର ବୟସ ଗଲାଣି ଛୁଇଁ
ସୁସ୍ଥ ସତେଜ ଉତ୍ଫୁଲ୍ଲ ତ ତଥାପି ରହୁଛି ମୁହୁଁ ।”

ୟାରବାଡ଼ା କାରାବାସେ,
କବି ରବୀନ୍ଦ୍ର ସାକ୍ଷାତ କରି ପଚାରିଲେ ଧୀର ଭାଷେ ।

"କବି ଚର ତୁମେ କଳ୍ପନାମୟ ଜୀବନ ତୁମରି ଅଗେ
ଜୀବନର ଶତ ପରାଜୟ ବୁକେ ବଜାୟୁ ବେଦନ ଜାଗେ ।
ଜୀବନେ ମୋହର ସ୍ୱଳନାନ୍ତ ଓବୋଲ୍ ଧରିଅଛି ଯେଉଁ ପଥ
ପଦେ ପଦେ ତାର ଲାଗି ରହିଅଛି ଝଞ୍ଜା ଝଟିକା ଶତ ।
ଦେହେ ମନେ ସଦା ଦିବସ ରଜନୀ ଆଘାତ ବାଜୁଛି ଆସି
କେତେ ଜୀବନର ଜଞ୍ଜାଳ ଜ୍ୱାଳା ନୟନେ ପଡୁଛି ଝାସି ।
କେତେ ଯେ ଭାବନା ଭରେ
କେଉଁପରି ମୁହିଁ ମୁକ୍ତ ସତେଜ ରହିବି ଏ ଧରାତଳେ ?"

କବି କବି ତାହାଁ ମମତାର ସାଥେ କହିଲେ ସ୍ନମତା ଢାଳି,
"ଭାବନାର ଧାରା ଏଡି ଦେଇ କେବେ କବି କି ପାରଇ ଭୁଲି ?"

"ସତ୍ୟ କହୁଛ ମାନି ହେ କବି ଭଲ କରି ଭାବ ମନେ,
ଯେଉଁ ଉଦୟ ଉଷାର ଆଲୋକେ କୁଳାଇ ପୁଲକ ମନେ;
ତୁମେ ସେନା ଭାବ ମଞ୍ଜୁ ସୁତାନେ ବିହଗ ଗାଉଛି ଗାନ,
ସେଇ ଗୀତ ସ୍ୱରେ ଝଂକୃତ କର ଉଠିଲା ତୁମର ପ୍ରାଣ ।
ତୁମେ ଯେନା ଭାବ ପ୍ରଭାତର ପକ୍ଷୀ ଉଷାର ସ୍ୱାଗତ ରଚେ
ମାନି ନେଇ କବି ଯେ ଭାବନା, ସେଇ ସବୁର ମୁଁ ବନ୍ଧୁ ପଛେ ।

ମନେ ମୁଁ ଭାବଇ ମୁକ୍ତିର ଦିନ ସେ ଖାଇଥିଲି ପେଟ-ପୂରା
ନୀଡ଼-ଶୟନରେ ନିବିଡ଼ ନିଦରେ ଶୋଇଥିଲି ମନ-ଭରା ।
ନ ଭଙ୍ଗି ଛିଙ୍କାଏ ମେଳା
ପ୍ରଭାତ ଆଲୋକେ ଯାହାର ପଥେ ମୂଲକେ ବାହାର ମେଳା ।
ତୁମେ ସିନା ଶୁଣ ସଙ୍ଗୀତ ତାର ମୁଁ ଖୋଜେ ତାହାର ସ୍ୱାଦ
ତୁମେ ଦେଖ ଯେଉଁ ପଦ୍ମ ଫୁଲଟି ମୁଁ ଦେଖେ ତାହାର ନାଡ ।"

"ଦରଦୀ ହେ ଅତି ଶ୍ଳାଘ୍ୟ ଜଗତେ ତୁମ ଜୀବନର ଧାରା,
ସେଇଥି ସକାଶେ ଜନ-କଲ୍ୟାଣେ ତୁମେ ବନ୍ଦେ ଅଛ କାରା ।
ତୁମକୁ ଦେଖିବା ଆଶେ
ତୁମକୁ ଦେଖିବା ପାଇଁକି ମୁଁ ସିନା ଅସିଚି ଏ କାରାବାସେ ।"

# ଜୟ ଗାନ୍ଧୀ

୧

ବଂଚିତ ଲାଂଛିତ ବଦଳିତ ମାନବ ଜାତିର ଜାଗୃତି ଲାଗି
ବାପୁ ଅବତରିଲେ କରି ଉଦ୍‌ବେଳିତ ବିଦ୍ରୋହୀ ଅଛି ଜାଗି ।
ପ୍ରାଣେ ପ୍ରାଣେ ଦେଇଚ ମୁକ୍ତି ପିଅସା,
ମର୍ମେ ମର୍ମେ ଦେଇଚ ନନ୍ଦିତ ଅଶା,
କଣ୍ଠେ କଣ୍ଠେ ଦେଇଚ ନିର୍ଭୟ ଭାଷା,

ଜୟ ଗାନ୍ଧୀ, ଜୟ ଗାନ୍ଧୀ,
ମୋହିତ ଜଗତର ପ୍ରେମ ସମାଦର, ହୃଦୟର ଚେହୃତ ନାନ୍ଦୀ

୨

ଦୁର୍ଦ୍ଦମ ଦୁର୍ଜ୍ଜୟ ହେ ଚିର ନିର୍ଭୟ ଅହିଂସ ତବ ଅଭିଯାନେ
ଗର୍ବିତ ଶାସନ ଦର୍ପିତ ଆସନ ଶିହରଇ ମୃତ୍ୟୁ ଅଭିମାନେ;
ନାଚଇ କେବେ ବିଷ-ଜର୍ଜ୍ଜର ଉଚ୍ଛ୍ୱାସେ,
ଛୁଟଇ କେବେ ବନ୍ଧନ କାରାବାସେ,
ବନ୍ଦଇ କେବେ ନମ୍ର ମନୋରମ ଭାଷେ,
"ଜୟ ଗାନ୍ଧୀ ଜୟ ଗାନ୍ଧୀ"
ମୋହହତ ଜଗତର ଦେନ ସମାଦର, ହୃଦୟର ଲୋହିତ ନାନ୍ଦୀ ।"

୩

ବିଶ୍ୱ-ବିତାନେ ବିସ୍ତୃତ ଅଟେଣ ତବ ଅବଦାନର ବାର୍ତ୍ତା,
ଅମ୍ବର-ଚୁମ୍ବିତ ଉନ୍ନତ ଅନ୍ତର, ସଂକୁଳ ଜୀବନ-ଯାତ୍ରା,
କାରାବନ୍ଧନ ଅଦର ସଞ୍ଚିତ ମୁକ୍ତି,
ମୌନ ବ୍ରତ ଧରି ଶାଣିତ କରୁଅଛ ଉକ୍ତି,
ଅନଶନ କରି ପୁଣି ଲଭୁଅଛ ଅନୁପମ ଭୁକ୍ତି;
ଜୟ ଗାନ୍ଧୀ, ଜୟ ଗାନ୍ଧୀ,
ମୋହହତ ଜଗତର ଦେନ ସମାଦର, ହୃଦୟର ଲୋହିତ ନାନ୍ଦୀ ।

୪

ନୟନର ବିଗଳିତ ଲୋତକ, ହୃଦୟର ଶୋଣିତ ଢାଳି
ଜୀବନ ଦୀପର ଦୀପ୍ତ ମୟୂଖ ତବ ଧ୍ୱାନ୍ତ ବୁକେ ଅଛି ଜାଳି ।
ଅଗ୍ନି ଶିଖା ଅଙ୍କିତ କରି ମୋହିତ ଚକ୍ଷେ
ଭୈରବ ପୁଲକିତ ପକ୍ଷେ, ବିହ୍ୱଳ ବକ୍ଷେ
ମୁଗ୍ଧ ପତଙ୍ଗମ ଛୁଟୁଅଛି ମୁହିଁ ତବ ଲକ୍ଷ୍ୟ,
ଜୟ ଗାନ୍ଧୀ, ଜୟ ଗାନ୍ଧୀ,
ମୋହିତ ଜଗତର ବେଦନ ସମାଦର ହୃଦୟର ଲୋହିତ ନାନ୍ଦୀ ।

---

## ସେନାନୀ ସୁଭାଷ

"ଜୟ ହିନ୍ଦ୍
ଜୟ ହିନ୍ଦ୍"
ସିନ୍ଧୁ ସେପାରୁ ସେନାନୀ ସୁଭାଷ ଡାକେ
"ଆଜାଦ୍ ଫଉଜ୍ ମୁକ୍ତି କବଚ ପିନ୍ଧ୍
ଜୟ ହିନ୍ଦ୍
ଜୟ ହିନ୍ଦ୍ ।

ଯାପାନ କରୁଛି ବୋମା ବର୍ଷଣ
ଭାରତ ଦଖଲ ପାଇଁ,
ଭାରତର ଆଜ ପୂର୍ବ ଦୁଆରେ
ଶତ୍ରୁ ଅଛି ବାହି ବାହି ।
ବଞ୍ଚିଛି ଆଜି · ବଞ୍ଚିଛି ଆମ
ଇଂରେଜ ସରକାର,
ରକ୍ଷାର ଛଳେ ଲଗାଇଛି ଏବେ
ବଡ଼ ଅଦ୍ଭୁତ ରୁଲ୍ ।

ଭାରତର ଯଦ     ଏଇ ପରିମାଣ
ମୃତ୍ୟୁରେ ଯଦ ବଳି
ମୃତ୍ୟୁ-ବିହୀନ     ମୃତ୍ୟୁର ଡାକ
ନିର୍ଭୟେ ନେ ବରି ।
ଶତ୍ରୁର ବୁକେ     ଶତ୍ରୁର ମୁଖେ
ଅଗ୍ନେୟସ୍ତ୍ର ବାଣ ବିନ୍ଧ୍,
ଗୁରୁ ଗମ୍ଭୀରେ     ଢୋଲ ଜୟନାଦ
ଜୟହିନ୍ଦ୍ ଜୟହିନ୍ଦ୍ ।

ଚଲେ ଦିଲ୍ଲୀ,
ଚଲେ ଦିଲ୍ଲୀ,
ଫିରିଂଗି ଭୟେ     କଂପୁଚି ଅଙ୍ଗ
ଭାରତର
ପୁରପକ୍ଷୀ ।

ଦିଲ୍ଲୀ ସହର,     ଦିଲ୍ଲୀ ସହର,
ଭାରତର ରାଜଧାନୀ,
ଦିଲ୍ଲୀ ଦଖଲ     ଭାରତ ଦଖଲ
ଏକ ବୋଲି ନେ ମାନି ।
ଦିଲ୍ଲୀ ଦୁର୍ଗର     ଲଲ୍ କଲା ପରେ
ତେଜିନ ପତାକା ଟେକ
କାଳ-ବକ୍ଷରେ     ଲାଲ ଅକ୍ଷରେ
ଇତିହାସ ନେ ଲେଖି ।

ଆମର ଦେଶର    ମଜଦୁର ଭାଇ
ଆମର କିଷାଣ ଭାଇ
ବୁକୁ-ରକ୍ତରେ    ରାସ୍ତା ଗଢ଼ିଛ
ମୁକ୍ତି ଆଣିବା ପାଇଁ
ସେଇ ପଥ ଧର    ସେଇ ପଥ ଧର
ଚଲ୍‌ରେ ଫଉଜ ଚଲ୍,
ଲାଲ୍ କିଲ୍ଲାରୁ    ମୁକ୍ତି ଆଣିବା
ଛାତି-ରକ୍ତରେ ଲାଲ୍ ।
ନାଚୁ ହିମାଚଳ    ନାଚୁ ସୀମାଚଳ
ବ୍ରହ୍ମପୁତ୍ର ସିନ୍ଧ୍ ;
ଜୟ ହିନ୍ଦ୍
ଜୟ ହିନ୍ଦ୍ ।

---

# ସ୍ୱାଧୀନତା ବାସରେ

୧

ମୁକ୍ତ ଭାରତ ଆଜି, ଲୁପ୍ତ ଅମର କାଳରାତ୍ରୀ
ବିଜୟର ଗୌରବ ଲଭିଅଛନ୍ତି ଆମ ଦେଶ ସଂଗ୍ରାମ-ଯାତ୍ରୀ
ଆମ ଦେଶ ସୈନ୍ୟ ।
ନିଃଶେଷ ଆଜି ସର୍ବ, ଲାଂଛନା ଦୈନ୍ୟ ।
ଛାଡ଼ି ଦେଇ ଭାରତର ଆସନ
ଇଂରେଜୀ ଶାସନ,
ସାଜି ତା'ର ବିଦାୟର ତରଣୀ
ସ୍ୱଦେଶର ଅଭିମୁଖେ ଧରିଲାଣି ସିନ୍ଧୁର ସରଣୀ ।
ଆଜି ଏହି ମଙ୍ଗଳ ପ୍ରାତେ ଗୋ
ଆମ ହାତେ
ଆମ ଦେଶ ଜନତାର ହାତେ ଗୋ
ଅର୍ପିଅଛନ୍ତି ସ୍ୱତନ୍ତ୍ରର ବିଭୂତି
ଯାହା ଲାଗି ଆମ ଦେଶ ସଂଗ୍ରାମ-ଭକ୍ତ
ଢାଳି ଢାଳି ବକ୍ଷର ରକ୍ତ
ଦେଇ ଦେଇ ଜୀବନର ଆହୁତି
ବାନାମସ୍ପେ ଲଭିଅଛନ୍ତି ଅତୀତର ବତ୍ତ୍ୱ ।
ଫେରି ପାଇ ଅଛି ପୁଣି ଉନ୍ନତ ଉଜ୍ଜ୍ୱଳ ତତ୍ତ୍ୱ;
ଫେରି ପାଇଅଛି ମାନ ଗର୍ବ ।
ଆଜି ଆମ ଭାରତର ପର୍ବ ।

୨

ସ୍ୱାଧୀନ ଭାରତ ଆଜ, ଦୂରେ ଗଳି ଯାଇଅଛି ଧ୍ୱାନ୍ତ,
ଦେଖ ସଖି, ଦିଗଭାଗ ହସିଉଠେ ଉଜ୍ଜ୍ୱଳ କାନ୍ତ ।
ନବ ଭାନୁ କିରଣର ଝାଞ୍ଜ ବିକୀରଣି ଚୁମ୍ବି
ଘରେ ଘରେ ଉଚ୍ଛୁଳଇ ପୁଲକର ଊର୍ମି ।
ସବୀରୁ ଉଠେ ସହ୍ର
ହୃଦୟର ରୁଚି ଦେଇ,
ସଜାଇଚ ଏ ଘର, ଏ ଅଂଗନ ଉରସ,
ଲେଖିଅଛ ଅଲେପନ, ଥାପିଅଛ ମଙ୍ଗଳ କଳସ,
ବାନ୍ଧିଚ ରଙ୍ଗୀନ ସଜ ଫୁଲ ପଲ୍ଲବ ଗୁଚ୍ଛ,
ତୋଳିଅଛ ପୁଲକର ଉତ୍ସ,
ମ୍ରିୟମାଣ ଜୁଇ ତଳେ ଆଣିଅଛ ଜୀବନର ପରଶ ।
ଆସ ଅଖି ଦୁହେଁ ମିଳି, ତିରଙ୍ଗ ପତାକା
ଉଡାଇବା ଚଞ୍ଚଳ ପବନେ
ଅମର ଏ ଭୁବନେ ।
ଆମ ଦେଶ ପତାକାର
ଶତ ଶତ ଶହୀଦର
ବନ୍ଦନା ଗାଇବା;
ଏଇ ଧନ୍ୟ ଅମ୍ବର କଂପାଇ କହିବା,
ହୃଦୟର ଉଦ୍‌ବେଳ ହର୍ଷ,
"ଜୟ ଜୟ ଭାରତବର୍ଷ ।"

# ଅଦ୍ଭୁତ ସେ ମାନବ-ପଦେ

ବମାଣ ଗୋଲା ସମ୍ମୁଖରେ
ଛାତିର ହାଡ ବଜ୍ର କରି
ଅହିଂସାର ଯୁଦ୍ଧ ରଣ
କଢ଼ିଲା ଯିଏ ହିଂସ୍ର ଅରି,
ସ୍ୱାଧୀନ କଲା ବିଶାଳ ଦେଶ
ମୁକ୍ତ କଲା ବିରାଟ ଜାତି
ଅଦ୍ଭୁତ ସେ ମାନବ-ପଦେ
ଅର୍ଘ୍ୟ ଢୋର ଢାଳ ରେ ସାଥି ।

୨

ସର୍ପ ଯେବେ ଦର୍ପଭରେ
ଦଂଶିବାକୁ ଆସିଲା ଧାଇଁ
ବାହୁରେ ତାକୁ ନେଲା ଯେ ତୋଳି
ଡରିଲା ନାହିଁ, ଥରିଲା ନାହିଁ ।
ଶମ୍ଭୁ ସମ ବକ୍ଷରେ ଧରି
କରିଲା ସାଥି, କଲା ଜୟ,
ଅଦ୍ଭୁତ ସେ ମାନବ-ପଦେ
ଅର୍ଘ୍ୟ ତୋର ଢାଳ ରେ ସାଥି ।

୩

ଦଗ୍‌ଧୀଭୂତ ପ୍ରାଣର ଜାଳା
ମର୍ମେ ଘେନି ଯେ ଭଗୀରଥ
ଗଗନ ପଥୁ ଅଣିଲା ବାହି
ଗଙ୍ଗାଧାର ମୁକ୍ତପଥ
ଶ୍ମଶାନର ଭସ୍ମ ପରେ
ଖେଳାଇ ଦେଲା ଜୀବନ-ଭାତି
ଅଦ୍ଭୁତ ସେ ମାନବ ପଦେ
ଅର୍ଘ୍ୟ ତୋର ଢାଳ ରେ ସାଥି ।

୪

ଭାରତ-ସୀତା ବନ୍ଦୀ ଥିଲା
ସିନ୍ଧୁ ପାରେ ବନ୍ଦୀ-ଶାଳେ,
ମୁକ୍ତ କରି ତାହାକୁ ଯିଏ
ଆଣିଲା ପୁଣି ଭାରତ-କୋଳେ ।
ଅରୁଣାଲୋକେ ପୁହାଇ ଦେଲା
ଲାଂଛନାର ତମିର-ରାତ,
ଅଦ୍ଭୁତ ସେ ମାନବ-ପଦେ
ଅର୍ଘ୍ୟ ମୋର ଡାଳି ରେ ସାଥି ।

---

# କୃଷ୍ଣଚକ୍ର ଗଡ

୧

ଜାଗି ଉଠ ଆଜ    ଅନଗୁଳର ମୋ
କୃଷ୍ଣଚକ୍ର ଗଡ଼,
ପୁଞ୍ଜିତ ଘନ    ଅନ୍ଧାର ଛାତି
ଅର୍ପିତ ଆଲୋକ-ଖଣ୍ଡ ।

ଏତେ ଦିନ ପରେ    ଶାସକ ଅମର
ପରଦେଶୀ ସର୍କାର
କାଳସ୍ରୋତି ଝଡ଼    ଚାଲି ଯାଇ ଅଛି
ସିନ୍ଧୁର ପରପାର ।

ଭାରତ ଜନନୀ    ପାଇଅଛି ଆଜ
ମୁକ୍ତିର ଗଉରବ
ପଥେ ପଥେ ଦେଖ    ଉଚ୍ଛୁଳା ପଡ଼ୁଛି
ଉତ୍ସବ କଳରବ ।

ଜାଗ ରେ    ଶହୀଦ୍ ଜାଗ,
ସ୍ୱାଧୀନତାର ଏଇ    ଉତ୍ସବେ ଆଜି
ଅଛି ରେ ତୋହର ଭାଗ ।

୨

ଶହେ ବର୍ଷର ତଳେ
ଝାଡଖଣ୍ଡରେ ବିପ୍ଳବ-ନିଆଁ
ଜାଳି ଦେଇ ଥିଲୁ ଥରେ ।

ଆମ ଓଡ଼ିଶାରୁ ବିଦେଶୀ ଶାସନ
ଦୂର କରି ଦେବା ଲାଗି
ଅଗ୍ନେୟ ଗିରି ପରିଏ ଦର୍ପେ
ଉଠିଥିଲୁ ତୁହି ଜାଗି ।

ପଠାଇ ଥିଲୁ ତୋ ପାଇକ ବାହିନୀ
ଦୁର୍ବାର ନିର୍ଭୟ,
ଶୁଣାଇ ଥିଲୁ ତୋ ରଣ-ଦୁନ୍ଦୁଭି
ବନ-ଜଙ୍ଗଲ-ମୟ ।

"କାଳ ମରଣର ଭକ୍ତ ଆମେ ରେ
ରକ୍ତ ଆମର ତାଜା
ବିଦେଶୀ ଏ ଦେଶୁ ଚାଲି ଯାଅ ତମେ
ଆମେଇ ଆମର ରାଜା ।"

ସିନ୍ଧୁ, ଭୁବନ ସେନାନୀ ତୋହର
ଛାଡ଼ିଥିଲେ ଯେଉଁ ଡାକ
ବଣ-ନିଆଁ ପରି ବଣ ଜଙ୍ଗଲେ
ମାତିଗଲା ଚାରିପାଖ ।

ପତଙ୍ଗ ପରି ଶହ ଶହ ଯୁବା
ଓସରି ଶିଖା ନେଲେ ବରି
ବାହାରି ପଡିଲେ ନଳି ବନ୍ଧୁକ
ଅସି ଧନୁ ଶର ଧରି ।

ବିଜୟ-ଲକ୍ଷ୍ମୀ ପାଇ ପାରିଲ୍କି ?
ବାହାରି ଥିଲ୍ ଯେ ତେଜେ,
କୁଟ ଚକ୍ରର ବଞ୍ଚନାରେ ତୁ
ଖୋଇଲ୍ ମରଣ ଶେଯେ ।

ଅଷୟ ତୋର ବକ୍ଷ ତଳର
ରକ୍ତ-ଲହରୀ ଢାଳି
ଦେଶ ଜନନୀର ଚରଣ ଯୁଗଳେ
ରକ୍ତ ମଶାଲ ଜାଳି ।

ବ୍ୟର୍ଥ ହେଲା କି ତୋର ଅଭିଯାନ
ତୋର ମୁକ୍ତିର ରଣ ?
କାଳର ସ୍ଥାତରେ ରକ୍ତ-ଲିପିରେ
ରଖିଗଲ୍ ତୋର ପଣ ।

ଶତେକ ବର୍ଷ ପରେ
ସଫଳ ହୋଇଛି ସ୍ୱପ୍ନ ତୋହର
ଦେଖ ଆଜ ଭାରତରେ ।

୩

ଝାଡ଼ଖଣ୍ଡର ଗୁପ୍ତ ଗଡ ରୁ
ଅନର୍ଗଳ-ଗୌରବ,
ଦଗ୍‌ ବଦଗରେ ବାଜି ଉଠୁ ଅଛି
ଜୀବନର କଳରବ ।
କ୍ଷୁଦ୍ର ଡାଳରେ ମହାକାଳ ଏ ଯେ
ନାଚି ଉଠେ ଶୃଙ୍ଗପାଖେ,
ମୃତ୍ୟୁର କୋଳୁଁ ଜାଗ ମୁର୍ଦ୍ଦାର
ଗଡଜାତ୍ମକ ମୁଁ ଡାକେ ।
ଜାଗ ରେ ଶହୀଦ୍ ଜାଗ ।
ପ୍ରାଣ-ଭର ଏଇ ଉତ୍ସବେ ଅଜି
ଅଛି ରେ ତୋହର ଭାଗ ।

---

## ଉଦ୍ଧାମ ସିଂ

ଉଦ୍ଧାମ ସିଂ ପଞ୍ଜାବରେ ଜଣେ ଶିଖ୍ ଯୁବକ । ଓଡ଼ୱାର ପଞ୍ଜାବର ଲାଟ ଥିଲା ବେଳେ ବ୍ରିଟିଶ ସରକାର ଜାଲିଅନାୱାଲାବାଗ ଓ ପଞ୍ଜାବରେ ଯେଉଁ ଅତ୍ୟାଚାର କରିଥିଲେ ଭାରତର ମୁକ୍ତି ସଂଗ୍ରାମରେ ତାହା ଏକ ରକ୍ତାକ୍ତ ପର୍ଯ୍ୟାୟ । ଉଦ୍ଧାମ ସିଂ ଓଡ଼ୱାରଙ୍କୁ ଲଣ୍ଡନର ପାର୍ଲିଅମେଣ୍ଟ ଭବନରେ ଗୋପନରେ ହତ୍ୟା କରି ଫାସି ବରଣ କରିଥିଲେ । ସେ ଶହୀଦ ଭାରତ ଇତିହାସରେ ଅମର ।

## ହେ କବି ନୋଗୁଚି

ଯାପାନର କବି ଇଅନ ନୋଗୁଚି ୧୯୩୮ରେ ଚୀନରେ ଯାପାନର ଯୁଦ୍ଧ-ଲୀଳାକୁ ସମର୍ଥନ କରି ଚିଠି ଲେଖିଥିଲେ ଗାନ୍ଧିଜୀ ଓ କବି ରବୀନ୍ଦ୍ର ନାଥଙ୍କ ନିକଟକୁ, Modern Reviewରେ ତାହା ପ୍ରକାଶିତ ହୋଇଥିଲା । ଗାନ୍ଧୀଜୀ ତାର ଜବାବ ଦେଲେ ନାହିଁ, ରବୀନ୍ଦ୍ର ନାଥ ଦେଲେ ମାନ ବଡ ତୀବ୍ର ଓ ନିର୍ଭୟ ଜବାବ । ଶେଷରେ ନୋଗୁଚି Hindusthan Standard ରେ ଲେଖିଲେ ଖୋଲା ଚିଠି—"My friends in India" । ସେ ସବୁ ପାଠ କରି ମୋ ମନରେ ଯେଉଁ ଭାବରାଜିର ଉଦୟ ହୋଇ ଥିଲା ତାହାହିଁ ଏଇ ଲେଖାର କଙ୍କାଳ ।

## ଜୟ ଗାନ୍ଧୀ

୧୯୭୫ ର ଗାନ୍ଧୀ-ଜୟନ୍ତୀ ଉପଲକ୍ଷରେ ରଚିତ । ସଂସ୍କୃତର ଗୁରୁ ଲଘୁ ଛନ୍ଦରେ ଏ କବିତାଟି ଲେଖା ହୋଇଅଛି ।

## କୃଷ୍ଣଚକ୍ର ଗଡ

କୃଷ୍ଣଚକ୍ର ଗଡ ଅନୁଗୁଳର ଶେଷ ରଜା ସୋମନାଥ ସିଂହ ଜଗଦ୍ଦେବଙ୍କର ଗୁପ୍ତଗଡ । ତାହାର ଭଗ୍ନାବଶେଷ ଅଦ୍ୟାପି ଅଛି । ୧୮୪୬ରେ ସୋମନାଥ ସିଂହ କେତେଜଣ ଗଡ଼ଜାତ ରଜାଙ୍କ ସହିତ ପରାମର୍ଶ କରି ସୈନ୍ୟ ପଠାଇ ଥିଲେ ବ୍ରିଟିଶ ସରକାରଙ୍କର କଟକ ସହର ଆକ୍ରମଣ କରିବାକୁ । ସିନ୍ଧୁ ଗଡନାୟକ ଓ ଭୁବନ ମଙ୍ଗରାଜ ଥିଲେ ସେହି ସୈନ୍ୟର ସେନାପତି । ମାତ୍ର ବ୍ରିଟିଶ ସୈନ୍ୟ ଭୟରେ, ବହୁତ ଯାତ୍ରୀ ଜମାଉତଙ୍କୁ ଦଶପଲ୍ଲାର ସୁନାଖଣିଅଠାରେ ରାତି ଅଧରେ ହାଣି ପକାଇଲେ । ଧର୍ମ ଭୟରେ ସମସ୍ତେ ବିବ୍ରତ ହୋଇ ଉଡ଼ିଲେ । ଓଡ଼ିଶା ସରକାରଙ୍କ ନିକଟରେ ହତ୍ୟା ମୋକଦ୍ଦମା ଚାଲିଲା । ଅନୁଗୁଳର ରଜା ଓ ସେନାପତିମାନେ ବିଦ୍ରୋହୀ ବୋଲି ବନ୍ଦୀ ହେଲେ ମାତ୍ର ସେମାନେ ଯେଉଁ ବୀରତ୍ୱ ଓ ସାହସ ଦେଖାଇ ଥିଲେ, ତାହା ରାଜସ୍ଥାନ ପରି ଅନୁଗୁଳ ଇତିହାସକୁ ଗୌରବମୟ କରିଅଛି । ଇଂରେଜ ସରକାର ଅନୁଗୁଳ ଦାଖଲ କରିଥିଲେ ୧୮୪୭ ରେ । ଆଜକୁ ଶହେ ବର୍ଷ ତଳେ ।